

# ସେମାନେ ଫେରିଗଲେ

ସଂକର୍ଷଣ ସାମଲ

# ସେମାନେ ଫେରିଗଲେ

● ଲେଖା : ସଂକର୍ଷଣ ସାମଲ
● ଚିତ୍ର : ବଳଦେବ ମହାରଥା



ଏଇଟି
ମିନି ପାଇଁ
ଯାହାର ବହୁକଥା
ଏ ବହିରେ ଅଛି ।


ସଂକର୍ଷଣ ସାମଲ

**ସେମାନେ ଫେରିଗଲେ**

ପ୍ରଥମ ପ୍ରକାଶ : ଡ଼ିସେମ୍ବର ୧୯୯୬

ଅଙ୍କନ : ବଳଦେବ ମହାରଥା

ପ୍ରକାଶକ :
*Modern Classic Communication*
*43/F Ashok Nagar Bhubaneswar*

ମୂଲ୍ୟ : ୩୫ ଟଙ୍କା ମାତ୍ର

**Sankarshan Samal**

**SEMANE FERIGALE**

*First Edition*
December 1996

*Design*
Baladeba Moharatha

*Printed by*
Modern Classic communication
43/F Ashok Nagar Bhubaneswar

*Price : Rs. 35/-*



ଆମ ଗାଁ ମୁଣ୍ଡରେ ବରଗଛଟିଏ ।
ତା' ଡାଳରେ ଗୋଟାଏ କାଉବସା ।

ଦିନେ ଛାଇଲେଉଟାଣି ବେଳକୁ ମାଆକାଉ ଛୁଆ ପାଇଁ ଆଧାରଧରି ସେଇ ବସାକୁ ପଶିଲା । ମାଆକୁ ଦେଖି ଛୁଆଟି ଖୁସିରେ ପାଟି କରି ଉଠିଲା କୁଉ - କୁଉ - ।

ଚମକି ପଡିଲା ମାଆକାଉ ।

''କ'ଣ କହିଲୁ ?

କୁଉ କୁଉ କୁ



ଆଉଥରେ କହିଲୁ ?'' ସେ ଧମକେଇଲା ।

ଛୁଆଟା କ'ଣ ବା ବୁଝୁଚି !

ସ୍ୱରଲମ୍ୱେଇଦେଲା ''କୁଉ....କୁଉ....କୁଉ''





କୁଆର ରାଗ ପୂରା-ମଥା ଉପରକୁ ଉଠିଗଲା । ଦି’ ପୁଳା ତାକୁ କାମୁଡି ପକେଇ ଗର୍ଜ୍ଜିଉଠିଲା ‘‘ଚୋରଣୀ କୋଇଲି ଏ ବର୍ଷ ବି ମୋ ବସାରେ ଡିମ୍ବ ଦେଇଚି ହଇରେ ପୋଡାମୁହାଁ ତୁ ତାଆରି ଛୁଆ ? ତୋଅରି ପାଇଁ ମୁଁ ଏତେ କଷ୍ଟ କଲିଣି ?’’

କାଉର ପାଟିଶୁଣି  ପଡ଼ୋଶୀ ଚଢ଼େଇମାନେ ପାଖ ଡାଳଟାରେ ଆସି ଜମା ହୋଇଗଲେ । ତା'ର କଳେଇ-ଗୁଣରୁ ସେମାନେ ତାକୁ ମୋଟେ ଭଲପାଆନ୍ତି ନାହିଁ । ତା' ବସା ଆଡକୁ କେହି ନଯାଇ କୁହାକୁହି ହେଲେ ।

''ସେଠି ଘଟଣାଟା କ'ଣ''? ବଣି ପଚାରିଲା ।



ହଳଦୀବସନ୍ତ କହିଲା ''ଏଇ କଥାତ ମୁଁ ବହୁଆଗରୁ ଅନୁମାନ କରିଥିଲି । ବିଚାରୀ କୋଇଲି ଛୁଆକୁ ଆଜିଯାଏଁ ପାଳୁଥିଲା । ଏବେ ଜାଣୁଚି''।

ମା'-ଘୁ' କାଳିକାର ଗୁଣଟା ମୋଟେ ଭଲନୁହେଁ । ସିଏ ଶୁଣେଇ କରି କହିଲା -''ହଇଲୋ ପରଛୁଆକୁ ପାଳି ନିଜର ଦୋଷ ନଧରି କାହାକୁ ଦଉଛୁ ଗାଳି'' ?



ମା'ଆକୁଆ ଏହା ଶୁଣି ତା ସହିତ କଳି ଲଗେଇବା ପାଇଁ ବାହାରି ଆସୁଥିଲା । ଏତିକିବେଳେ ବାପ-କୁଆ ଉଡିଉଡି ଆସି ବସାରେ ପହଁଞ୍ଚିଲା । ତାକୁ ଦେଖୁ ଦେଖୁ ମାଆ ଏକା ନିଃଶ୍ୱାସରେ ସବୁକଥା ଗପିଗଲା । ଆଉ ଭେଁ-ଭେଁ କାନ୍ଦିବାକୁ ଲାଗିଲା ।





ବସା କଣରେ କୁକୁରି କାଙ୍କୁରି ହୋଇ ବସି ମାଆ ମୁହଁକୁ ବିକଳରେ ଚାହୁଁଥିଲା ଛୁଆଟା ବାପାକୁ ଦେଖି ସାହସ ପାଇ ତା ପାଖକୁ ଲାଗିଆସିଲା । ସିଏ କି'ଜାଣେ ? ବାପା ରାଗରେ ତାକୁ ଧକ୍କାଏ ମାରି କହିଲା ''ରହ ଦଉଚି ତତେ ପାନେ''



ଏହା କହି ସେ ତା ଦାନ୍ତୁଆ
ଥଣ୍ଟରେ ଛୁଆଟାକୁ ଖୁମ୍ପି ପକାଇଲା ।
କେଁ କେଁ କାନ୍ଦି ଉଠିଲା ଛୁଆଟି ।
ଛଟପଟ ହୋଇ ବସାରୁ ଗଳି ପଡିଲା ।

ସେତ ଆଗରୁ ଖଣ୍ଡିଉଡା ଶିଖିଥିଲା । ପ୍ରାଣ ବଞ୍ଚେଇବାକୁ ଉଡିବାକୁ ଲାଗିଲା । ଯେତେ ତା'ର ବଳ ସବୁ ଖଟେଇ ସେ ଉଡିଲା । ପଛେ ପଛେ କୁଆଟା ପାଟି କରି କରି ଗୋଡାଉଥାଏ । ଖୁମ୍ପି ପକାଉଥାଏ । କୁଆର ଡାକଶୁଣି ତା' ଜାତି ଭାଇ ଦଶଜଣ ବି ଆସି ଜୁଟିଗଲେ । ସମସ୍ତେ ମିଶି ମହାଭାରତ ଯୁଦ୍ଧରେ ଅଭିମନ୍ୟୁକୁ ଆକ୍ରମଣ କଲାଭଳି ତାକୁ କଲବଲ କରି କାମୁଡି ପକାଉଥାନ୍ତି ।

ଧନ୍ୟ କହିବ ଟିକି କଜଳପାତିକୁ । ସେମାନେତ ଲଢୁଆ ଜାତି । କୋଉଠିଥିଲା ସେ ? ଧାଇଁଆସିଲା । ମଝିରେ ପଶିଯାଇ କୁଆମାନଙ୍କୁ ତଡିବାକୁ ଚେଷ୍ଟା କଲା ।





ତାହାରି ଯୋଗୁ ଛୁଆଟା ଟିକିଏ ରକ୍ଷା ପାଇଗଲା ।

ବିଚରାଟି ଆଉ ଅଳପ ଦୂର ଆଗେଇ ଯାଇଁ ତଳକୁ ଖସିପଡିଲା ।



କଳାଘୁମର ପାଣି । ଓଃ ତଳେ ତ ଗୋଟାଏ ନଈ ।
ସେ ପାଣି ସୁଅରେ ଭାସିଗଲା ।
କଜଳପାତି ଆଉ କ'ଣ କରିପାରିବ ? ତାକୁ ଚାହିଁ ଦୁଃଖରେ ଫେରିଲା ।
କୁଆମାନେ ନଈକୂଳରେ ବସି ଘଡିଏ କୋଇଲି ଜାତିକୁ ଯା' ଇଚ୍ଛା ତା' ଗାଳି ଦେଇ ଫେରିଲେ ।



ସେତେବେଳକୁ ସୂର୍ଯ୍ୟ ବୁଡିବା ଉପରେ ।
ବସାକୁ ବାପ-କୁଆ ଆସି ଦେଖିଲା ମାଆଟି
ଚୁପ୍‌ଚାପ୍ ବସିଚି । ତାକୁ ଦେଖୁ ଦେଖୁ ସେ ପଚାରି ଉଠିଲା
''କ'ଣ ହେଲା ? ସିଏ କୁଆଡେ ଗଲା''?
ସବୁଗପି ଗଲା ବାପକୁଆ । ପାଜି କୋଇଲି ଛୁଆକୁ
ସେ ପାନେ ଦେଇପାରିଚି । ଏଣୁ ତାକୁ ଟିକିଏ ଶାନ୍ତି
ଲାଗୁଥାଏ । ମାଆ ପଚାରିଲା ''ନଈ ପାଣିରେ
ଭାସି ଭାସି  ସେ କୁଆଡେ ଯାଇଥିବ''?

“ଆଉ ଯାଇଥିବ କୁଆଡେ ? ସିଧା ଯମପୁରକୁ” ବାପକୁଆଟି ଉତ୍ତର ଦେଲା । ହଠାତ୍ ବଡପାଟିରେ କାନ୍ଦିଉଠିଲା ମାଆକୁଆ । ବାପାକୁଆ ଆଶ୍ଚର୍ଯ୍ୟ ହୋଇ ତାକୁ ଖାଲି ଅନେଇଁ ରହିଲା ।





ମାଆ କହିଲା ''ଆହା ଛୁଆଟା ! କେତେଦିନ ମୁଁ ତାକୁ ପାଳିଚି । ତା' ପାଇଁ ଆଧାର ଖୋଜିଲା ବେଳେ କେତେ ଚଢେଇଙ୍କ ସାଂଗରେ କଳି ନ କରିଚି । ତା' ପାଇଁ କେତେ କଷ୍ଟ ନ କରିଚି ତା'ର ବା ଦୋଷ କ'ଣ ? ତା' ମାଆ ଚଣ୍ଡାଳୁଣୀ ଏଇଆ କାହିଁକି କଲା ?

ସେ ପୁଣି ବେଶୀ ଧକେଇ ହୋଇ କାନ୍ଦିଲା । କହୁଥାଏ ଓ କାନ୍ଦୁଥାଏ । ''ମୁଁ ଯେତେବେଳେ ତାକୁ କାମୁଡିବାକୁ ଆଁ କରୁଥାଏ ସିଏ ଭାବୁଥାଏ ମୁଁ ତାକୁ ଆଧାର ଦେବାକୁ ଯାଉଚି । ସିଏ ଥଣ୍ଟ ମେଲାକରି ଦେଉଥାଏ । ଆହା ବିଚରା ମରିଯାଇଥିବ । ବସାଟା କି ଖାଲି ଖାଲି ଲାଗୁଚି !''

ସେଦିନ ରାତିଟା ମାଆକୁଆ ଆଉ କିଛି କହିଲା ନାହିଁ । ଖାଇଲା କି ପିଇଲା ନାହିଁ । ଚୁପ୍‌ଚାପ୍ ଶୋଇଲା ।

ବାପକୁଆ ଭାବୁଥାଏ-''କିଅଜବ ସ୍ତ୍ରୀ ଲୋକଟା ଇଏ ! ଯଦି ପରପିଲା ପାଇଁ ଏତେ ମମତା ତାକୁ ନରଖି ମୋତେ କାହିଁକି ରଗାଉଥିଲା ?''

ମାଆକୁଆ ଭାବୁଥାଏ ''ଛୋଟ ପିଲାଙ୍କୁ ଏମିତି ମାରିବା ଉଚିତ୍ ନୁହେଁ । ସେମାନଙ୍କର ବା ଦୋଷ କ'ଣ ପରପିଲାକୁ କ'ଣ ନିଜର କରିଥିଲେ ସିଏ କ'ଣ ମାଆ ବୋଲି ଚିହ୍ନି ନ ଥାନ୍ତା''



## ଦୁଇ

ସେ ଛୁଆଟି ବୁଡିମଲା ନାହିଁ । ନଈସୁଅରେ ଭାସିଭାସି ଗଲା । ବାଙ୍କରେ ଝୁଲି ପଡିଥିଲା ନଈ ଦିହକୁ ଗୋଟିଏ ବୁଦା । ସେଥିରେ ଲାଗିଗଲା । କଷ୍ଟେମଷ୍ଟେ ତା ଉପରକୁ ଉଠିଲା । ପାଣି ଝାଡି ଝୁଡି ହେଉଥାଏ । କୁଉଁ କୁଉଁ କାନ୍ଦୁଥାଏ ।





ଦଇବ ଯୋଗକୁ ସେଇ ବାଟେବାଟେ ଉଡିଉଡି ଯାଉଥିଲେ କୋଇଲି ଦୁଇଟି । ସେମାନଙ୍କର ବସାକୁ ଫେରିବା ଆଜି ଟିକେ ଡେରି ହୋଇଯାଇଥାଏ । ସେମାନେ ତା କାନ୍ଦଣା ଶୁଣି ତାକୁ ଦେଖି ପକାଇଲେ । ତା'ପାଖରେ ଆସି ବସିଲେ । ''ହେଇସେଇ ବରଗଛର କାଉ ବସାରରେତ ମୁଁ ଅଣ୍ଡା ଦେଇଥିଲି । ଏଇଟି ନିଶ୍ଚୟ ଆମ ପିଲା ।''
ମାଆ କୋଇଲି କହିଲା ।



ସେମାନେ ତାକୁ କୋଳକୁ ନେଲେ ।

ଆଉଁସି ଦେଲେ । ବୋଧଦେଲେ । ସାହାସ ଦେଲେ ।

ତାକୁ ସାଂଗରେ ଧରି ବସାକୁ ଫେରିଲେ ।

କୋଇଲି ଦିହିଙ୍କ ଆନନ୍ଦ ଦେଖେ କିଏ ? ସେମାନେ ତାକୁ ଖାଇବାକୁ ଦେଲେ । ସେ ଖାଇଲାବେଳେ ତା ପିଠି ଥାପୁଡେଇ ବୁଝେଇଲେ ''ଆମେ ତୋର ବାପାମାଆ ।''ଛୁଆଟି ବୁଝିଗଲା ।

କାହିଁକି କେଜାଣି ସେମାନଙ୍କୁ ଅଳପ ସମୟ ଭିତରେ ପୂରାପୂରି ଆଦରି ଗଲା । କୁଆଙ୍କ କାମୁଡା ତାକୁ ଏତେ ଡରେଇ ଦେଇଥାଏ ଯେ ସେ ବେଳେ ବେଳେ ଚମକି ପାଟିକରି ଉଠୁଥାଏ ।



ମାଆ କୋଇଲି ତାକୁ କୋଳରେ ପୂରାଇ ଶୋଇଲା ।

ଏହା ଭିତରେ ସପ୍ତାହଟିଏ ବିତିଗଲାଣି । ବାପାମାଆଙ୍କ ଚେଷ୍ଟାରେ ଛୁଆଟା ଭଲ ଭାବରେ ଉଡା ଶିଖିସାରିଲାଣି ।



ତାଙ୍କ ପାଖ ଗଛରେ ବଗ ଛୁଆଙ୍କ ସାଂଗରେ ଦି' ଚାରିଥର ଉଡା ପ୍ରତିଯୋଗିତା କରି ସାରିଲାଣି ।



ମାଆ କୋଇଲିକୁ କୁଆମାନଙ୍କୁ ଭାରି ଡର ମାଡୁଥାଏ - ସେମାନେ କାଳେ ତାକୁ ତା' ଠୁଁ ଛଡେଇ ନେଇ ମାରିଦେବେ । ତେଣୁ ଘର ଛାଡି ସେ ଚରିବୁଲି ବେଶୀଦୂର ଯାଏ ନାହିଁ । ଏଇ କେଇଦିନ ହେଲା କାହିଁକି କେଜାଣି ଗୋଟାଏ ବୁଢା ଡାମରା ତାଙ୍କ ଘର ପାଖରେ ଖାଲି ବୁଲୁଚି । ମାଆ କୋଇଲିର ତାକୁ ଭାରି ସନ୍ଦେହ ହେଉଚି । ଏଇ କ'ଣ ମୋ ଛୁଆଟିକୁ ପାଳିଥିଲା ? ରାଗ ରଖିଚି । ଯଦି ଚିହ୍ନି ପକେଇବ ନା !



ଦିନେ ସେ ବାପ କୋଇଲିକୁ ଡାକି କହିଲା । ''ଚାଲ ଏଠୁ ପଳେଇବା । ଏଠି ରହିଲେ ମୋ ଛୁଆ ପ୍ରତି ବିପଦ ।''

ବାପ ସବୁ ଶୁଣିଲା । କହିଲା ''କୌଣସି କଥାକୁ ଭଲଭାବରେ ନ ବୁଝି ଏମିତି ଡରି ପଳାଇବା ଉଚିତ୍ ନୁହେଁ । ଡରିଲେ ତ ଦୁନିଆ ଡରେଇବ । ଟିକିଏ ରହିଯାଇଁ ସେ ପୁଣି କହିଲା '' ଏ ବର୍ଷ ବର୍ଷାଋତୁ ଆସିବାର ବେଳ ହୋଇଗଲାଣି । ବର୍ଷା କାଳରେ ଏଠି ଚଳିବା ପାଇଁ ଆମକୁ ଭାରି ଅସୁବିଧା ହେବ । ଏଣୁ ଏଠୁ ପଳେଇବା କଥା ମୁଁ ବହୁଆଗରୁ ଭାବୁଥିଲି । ତମେ ତ କହିଲଣି ହଉ ଯିବା ଯଦି ଆଉ ମୋଟେ ଡେରି କରିବା ନାଇଁ ।''





ସେମାନେ ଥାଆନ୍ତି ଯେଉଁ ଝାମ୍ପୁଡା ଆମ୍ବ ଗଛଟିରେ ସିଏ ସବୁ ଶୁଣୁଥିଲା । ''ଆଶାକରିଥିଲି ଆଉ କିଛିଦିନ ଏଇଠି ରହିଯିବ'' ଥିରିଥିରି ତା ଡାଳ ହଲେଇ ସେ ଗଛଟି କହିଲା-

''କୋଉ କୋଇଲି ତ **ଆଜିଯାଏଁ** ମୋ ପାଖରେ ସବୁଦିନେ ରହି ନାହାଁନ୍ତି ତମେ ବା କେମିତି ରହନ୍ତ ! ହଉ ଯିବାକୁ ତ ଠିକ କରି ସାରିଲଣି ଯା' । ଆସନ୍ତା **ବର୍ଷ** ବଉଳ ହେବା ବେଳକୁ ନିଶ୍ଚୟ ଆସିବ ତମ ଗୀତ ଭାରି ବଢିଆ । ଗଲା ଚାରିମାସ ମୋତେ ତାହା ଭୁଲେଇ ରଖିଥିଲା । ମନେ ରହିଲା ? ଅସିବତ ?''

କୋଇଲି ଦୁହେଁ ଏକା ବେଳେକେ କହିଉଠିଲେ

''ହଁ ହଁ ନିଶ୍ଚୟ ଆସିବୁ ।''





ପୁଣି ଆମ୍ବଗଛଟିର ଅତି ଧୀର ସ୍ୱର ଶୁଣାଗଲା । ଏଥରକ ସିଏ ଅତି ଦୁଃଖିତ ଥିଲା ପରି ଲାଗୁଥିଲା । ''ତମେମାନେ ଆସିବ ନିଶ୍ଚୟ ଆସିବ । କିଂତୁ ମୁଁ ବଞ୍ଚିଥିଲେତ ''

''ତମେ ତ ବୁଢା ହୋଇନା'' ମାଆ କୋଇଲି କହିଲା ।

ଆମ୍ବଗଛ କହିଲା ''ବୁଢା ଟୋକାରେ କ'ଣ ଅଛି । ମଣିଷ ସେ ସବୁ ବିଚାର କରୁ ନାହିଁ । ଏଠି ମୋର ସାଂଗ ବହୁତ ଥିଲେ । ଦିନେ କେଇଟାରେ କାହାନ୍ତି ? ହେଇଅନା ସେଠି ଯେଉଁ ଲୋକର କୋଠା ତିଆରି ହେଉଛି ମୁଁ ତାହାରି ଜମିରେ ଠିଆ ହୋଇଛି ଘର ତିଆରି ଦିନ ଠୁଁ ମୁଁ ଭାବିଲିଣି ଯେ ତାର କବାଟ ଝରକା ପାଇଁ ମତେ ଦିନେ ନିଶ୍ଚୟ ବଳି ପଡିବାକୁ ହେବ ।''

ଏହା କହୁ କହୁ ସେ କାନ୍ଦିପକାଇଲା । ଏମିତି କାନ୍ଦିଲା ଯେ କୋଇଲି ଦୁହେଁବି ତା ସହିତ କାନ୍ଦି ପକାଇଲେ ।

ତା'ପରଦିନ ସଞ୍ଜ ଅନ୍ଧାର ମାଡି ଆସିବା ପୂର୍ବରୁ କୋଇଲି ଦୁହେଁ ଗଛଟିକୁ କହିଲେ "ମଉସା ଆମେ କାଲି ପାହାନ୍ତାରୁ ଯିବୁ । ତମ କଥା ଆମେ କେବେ ଭୁଲି ପାରିବୁନି । ତମକୁ ଛାଡି ଯାଉଥିବାରୁ ଆମ ମନ ବଡ ଦୁଃଖ । ତମକୁ ଏବେ ଗୋଟାଏ ବଢିଆ ଗୀତ ଶୁଣାଇବୁ । ଏଇ ଗୀତଟି ତମପାଇଁ ଆମର ଏବର୍ଷର ବିଦାୟ ଉପହାର । ଏଇ ଗୀତ ପାଇଁ ଆମେ କାଲି ସାରା ରାତି ଚେଇଁ ସୁର ମନେ ପକେଇଚୁ ।"



ଏହା କହି ସେମାନେ ଗୀତ ଆରମ୍ଭ କଲେ । କୁନି କୋଇଲିଟି ତାଙ୍କ ସହିତ ତାଳ ଦେଲା । ଖୁସିରେ ଆମ୍ବ ଗଛଟିର କଅଁଳପତ୍ର ଗୁଡିକ ହଲିବାକୁ ଲାଗିଲେ ।

''ଏମିତି ମିଠା ଗୀତ କେଭେ ଶୁଣାନଥିଲା'' ବୁଦାଭିତରକୁ ଶୋଇବାପାଇଁ ପଶିଯିବାକୁ ଭାବୁଥିବା ଚୁଇଁ ଚଢେଇଟି ମନକୁ ମନ କହିଲା । ସିଏ ଅଳସୁଆଙ୍କ ଗୁରୁ । ସୂର୍ଯ୍ୟ ବୁଡୁ ବୁଡୁ ଶୁଏ । ଆଜି କିନ୍ତୁ ବିଛଣାକୁ ନ ଯାଇଁ ବୁଦା ଅଗନରେ ବସି କାନ ଦେଲା ।

ଝିଣ୍ଟିକାଟି କହିଲା ''ଆହା ! ମୁଁ ବଡ ହାଲିଆ ହୋଇ ଯାଇଚି ନହେଲେ ଏଇ ଗୀତ ତାଳରେ ମୁଁ ମୋ ପେଁକାଳି ବଢେଇ ଥାଆନ୍ତି । ଆହୁରି ଜମିଥାନ୍ତା ।''



ଅଜାଙ୍କର ଗୋଟିଏ ଅଭ୍ୟାସ ଯେମିତି ହେଲେ ସେ ସଂଧ୍ୟାବେଳେ ରେଡିଓ ଶୁଣିବେ । ସେ ଦିନ ବି ସେ ପିଣ୍ଡାରେ ବସି ରେଡିଓ ଖୋଲିଦେଲେ । ଆମ୍ବଡାଳରୁ ଭାସି ଆସୁଥାଏ କୁହୁ-କୁହୁ । ''ଆଃ କେଡେ ବଢ଼ିଆ ! ମତେ ତ ଆସି ଅଶୀବର୍ଷ ହେଲାଣି । ଏମିତି ଗୀତ ମୁଁ କେବେ ଶୁଣି ନଥିଲି'' ସେ ରେଡିଓ ବନ୍ଦ କରି ଶୁଣିବାକୁ ଲାଗିଲେ ।

କିଛି ସମୟ ପରେ କୋଇଲିଙ୍କ ଗୀତ ସରିଲା । ଅଜା ଆଉଥରେ ରେଡିଓ ଖୋଲିଲେ । ସେତେବେଳକୁ ଆଞ୍ଚଳିକ ସମ୍ବାଦ ସରି ଆସୁଥାଏ । କେବଳ ତାର ଶେଷ ଧାଡିଟି ସେ ଶୁଣିଲେ ''ଆଉ ବାରଘଣ୍ଟା ପରେ ପୁରୀ ଉପକୂଳ ଦେଇ ମୌସୁମୀ ବାୟୁ ଓଡ଼ିଶାକୁ ପ୍ରବେଶ କରିବ ।''

''ଯା' ହେଉ ବର୍ଷା ଦିନ ଆସିଗଲା'' ଏ ତକ କହି ଅଜା ଘର ଭିତରକୁ ରେଡିଟିକୁ ଧରି ଉଠିଗଲେ ।





## ତିନି

ରାତିଟି କଟିଗଲା ।

ଅନ୍ଧାର ପୂରା କଟି ନଥାଏ ।

ପୂରୁବଦିଗ ପାହାଡଚୂଡା ଝଲସିବାକୁ ଯାଉଛି । ସୂର୍ଯ୍ୟ ବେଶ ହେଉଥିବେ ।

ଦକ୍ଷିଣ ଦିଗରୁ ପାହାଡଭଳି ଗୋଟାଏ ବଡ କଳା ବାଦଲ ମୁଣ୍ଡ ଟେକୁଥାଏ ।

ବାପା ମାଆ କୋଇଲି ଛୁଆଟିକୁ ଧରି ବାହାରି ପଡିଲେ ।

ସେମାନେ ଛୁଆଟିକୁ ମଝିରେ ରଖି ଉଡିବାକୁ ଆରମ୍ଭ କଲେ ।

ବାଦଲଟା ଆଉଟିକେ ଉପରକୁ ଉଠି ଆସିଲାଣି ।

ସୂର୍ଯ୍ୟଙ୍କର ତଥାପି ଦେଖାନଥାଏ । ଉଡୁଉଡୁ ବାପା କୋଇଲି କହିଲା ''ବାଃ କୁନିଟାତ ବେଶ ଉଡାଶିଖିଗଲାଣି । ଆମ ସହିତ ବି ତାଳ ଦଉଚି । ହଉ ଆଉଟିକିଏ ଜଲ୍‌ଦି ଡେଣାଚଲା । ମେଘ ଆସିବା ଆଗରୁ ଆମେ ଯେମିତି ନଈ ଆରପାରି ମୁଣ୍ଡିଆ ଟିପ ତା' ସେ କଡରେ ଥିବା ତୋଟାରେ ପହଁଞ୍ଚି ଯାଇଥିବା ।'' ଉଡୁଉଡୁ ଟିକିଏ ପରେ ଛୁଆଟା ଅନେଇଲା ତଳକୁ । ଏଇ ସେଇ ନଈ ଏ କୂଳଥିର ସେକୂଳ ଥିର । ମଝିରେ ଥିଇରି ବହି ଯାଉଛି । ଏଇଥିରେତ ସେ ଉବୁଟୁବୁ ହୋଇ ଭାସିଯାଉଥିଲା ।



ଆଜି ନଈକୁ ଦେଖି ତାକୁ ମୋଟେ ଡର ମାଡିଲା ନାହିଁ ।
ବାପାମାଆତ ପାଖରେ ଅଛନ୍ତି ଡର କାହାକୁ ? କାହିଁକି ?
ନଈଟିକୁ ସେମାନେ ପଛରେ ପକାଇ ଉଡିଗଲେ ।
ଉଡୁଉଡୁ କୁନିକୋଇଲି ତା ବାପାମାଆଙ୍କୁ ତଳକୁ ଦେଖାଇ ଦେଲା
''ହେଇ''



କେହି ଉଠିନଥାନ୍ତି । ଟିକି ଆମ୍ବଚାରା କେଇଟି । କିଏ ସବୁ ଆମ୍ବ ଖାଇ ଟାକୁଆ ପକେଇ ଦେଇଥିଲେ । ଅଦିନ ମେଘ କେତେଥର ତା ଉପରେ ପାଣି ଅଛାଡି ଦେଇଛି । ସେମାନେ ମାଟି ଉପରେ ଠିଆ ହୋଇଛନ୍ତି ।

ତମ୍ବା ରଂଗର ଦିହ । ପତର ବି ଭାରି କଅଁଳ । ସତେ ଯେପରି ସେମାନେ ନିଦରୁ ଉଠି ସେମାନଙ୍କୁ ବିଦାୟ ଦେଉଛନ୍ତି ସେମାନଙ୍କ ଟିକିଟିକି ହାତ ହଲେଇ ।''





ମାଆ  କୋଇଲି କହିଲା "ଆହା ! କି ସୁନ୍ଦର ଛୁଆ ଛୁଆ  ଗଛମାନେ ଏମାନଙ୍କୁ ଉପାଡି ପିଲାମାନେ ପେଁକାଳି ବଜାଇଲାବେଳେ ମତେ ବଡ ଦୁଃଖ ଲାଗେ । ଲାଗେ କଅଁଳା ପିଲା କାନ୍ଦୁଛନ୍ତି । ଏଇମାନଙ୍କୁ ଯଦି ନଷ୍ଟ ନକରି ପିଲାଏ ଠିକ୍ ଭାବରେ ନେଇ ଲଗାନ୍ତେ ଯତ୍ନ ନିଅନ୍ତେ କେଡେ କେଡେ  ତୋଟା ସବୁ ହୋଇଯାଆନ୍ତା ।"

କୁନି କୋଇଲି ସବୁ ବୁଝିଗଲାପରି କହିଲା "ବାଃ ଆମର ଭାରି ମଜା ହୁଅନ୍ତା ।"
ବାପାକୋଇଲି ତୁଣ୍ଡ ଖୋଲିଲା "ନାଇଁ କେବଳ ଆମରି ନୁହେଁରେ ସମସ୍ତଙ୍କର । ଦୁନିଆଟା ଯାକର ।"
ମାଆ କୁନିକୋଇଲି ପାଖକୁ ଲାଗି ଆସି କହିଲା "ଭଗବାନ ତୋତେ ବଞ୍ଚାଇଲା ପରି ଏମାନଙ୍କୁ ବଞ୍ଚାଇ ରଖନ୍ତୁ ।"
ଏଇମିତି କଥାକୁହାକୁହି ହୋଇ ସେମାନେ ଉଡି ଚାଲିଗଲେ ।



